# ନିକଟ ଦୂର

ଲେଖକ

**ଚିତ୍ତରଞ୍ଜନ ଦାସ**



# ନିକଟ ଦୂର

ଲେଖକ ଚିରରଞ୍ଜନ ଦାସ

ନୂତନ ପ୍ରକାଶ, ୨୦୧୧

ପ୍ରକାଶକ **ପଥିକ ପ୍ରକାଶନୀ**
ଭୁବନେଶ୍ୱର ୨୫, ଓଡ଼ିଶା

ପ୍ରାପ୍ତିସ୍ଥାନ **ପଥିକ, ୮୩/ଏ**
ବାପୁଜୀନଗର, ଭୁବନେଶ୍ୱର - ୯, ଓଡ଼ିଶା

ମୁଦ୍ରଣ ଗ୍ରାଫିକ୍ସ, ନୟାପଲ୍ଲୀ, ଭୁବନେଶ୍ୱର

ମୂଲ୍ୟ ୧୫ ଟଙ୍କା ମାତ୍ର

## ସୂଚୀପତ୍ର

# ଦେଶର ପତାକା ଓ ଜାତୀୟ ସଂଗୀତ

ପ୍ରତ୍ୟେକ ଦେଶର ପତାକା ହେଉଛି ତାହାର ଏକତାର ସଙ୍କେତ । ଯିଏ ଚିହ୍ନାଇଦିଏ, ତାହାକୁ ସଙ୍କେତ କୁହାଯାଏ । ପ୍ରାଚୀନ କାଳରେ ଯୋଦ୍ଧାମାନେ ନିଜ ନିଜର ରଥରେ ପତାକା ବ୍ୟବହାର କରୁଥିଲେ । ସେହି ପତାକାକୁ ଦେଖି ଦୂରରୁ ସେମାନଙ୍କ ରଥକୁ ଚିହ୍ନି ହେଉଥିଲା । ଦେବତାମାନଙ୍କୁ ଚିହ୍ନିବାକୁ ହିନ୍ଦୁ ଧର୍ମରେ ସେହିପରି ଭିନ୍ନଭିନ୍ନ ସଙ୍କେତ ମଧ୍ୟ ଅଛି । ଶିବଙ୍କ ହାତରେ ତ୍ରିଶୂଳ ଥାଏ ତ ବିଷ୍ଣୁ ସୁଦର୍ଶନ ଚକ୍ର ଧାରଣ କରିଥାନ୍ତି । ଦୁର୍ଗା ସିଂହ ଉପରେ ଆରୋହଣ କରିଥାନ୍ତି, ପୁଣି ସରସ୍ୱତୀଙ୍କୁ ମରାଳବାହିନୀ କୁହାଯାଏ । ସେହିପରି କୌଣସି ଦେଶକୁ ଚିହ୍ନିବାକୁ ହେଲେ ସେହି ଦେଶର ପତାକାକୁ ଦେଖିବାକୁ ହୁଏ । ସବୁ ଦେଶର ଲୋକମାନେ ଆପଣା ଦେଶର ପତାକାକୁ ଗଭୀର ସମ୍ମାନ ପ୍ରଦର୍ଶନ କରନ୍ତି । ଆବଶ୍ୟକ ପଡିଲେ ଜୀବନ ଦିଅନ୍ତି ପଛକେ, କିନ୍ତୁ କଦାପି ପତାକାର ଅପମାନ କରନ୍ତି ନାହିଁ ।

କିନ୍ତୁ ଏହି ପତାକାର ଇତିହାସ ମୋଟେ ଦୁଇ ବା ତିନିଶହ ବର୍ଷର ଇତିହାସ । ପ୍ରଥମେ ଇଉରୋପ ମହାଦେଶରେ ଏହାର ଜନ୍ମ ହୋଇଥିଲା । ଭିନ୍ନଭିନ୍ନ ଦେଶ ଆପଣାକୁ ଅନ୍ୟ ଦେଶଠାରୁ ଭିନ୍ନ କରି ଦେଖାଇବାକୁ ଗୋଟିଏ ପତାକା ବ୍ୟବହାର କଲେ । ପତାକା ହିଁ ଜାତିର ପ୍ରତୀକ ହେଲା, ଜାତି ବା ଦେଶର ଉଚ୍ଚ ଆଦର୍ଶର ପ୍ରତୀକ ହେଲା । କ୍ରମେ ଦେଶର ବିଭିନ୍ନ ପ୍ରଦେଶ ଆପଣା ଆପଣା ଲାଗି ସ୍ୱତନ୍ତ୍ର ପତାକା ରଖିଲେ । ଫିନ୍‌ଲାଣ୍ଡର ନଅଟି ପ୍ରଦେଶରେ ଏହିପରି ନଅଗୋଟି ଭିନ୍ନଭିନ୍ନ ପତାକା ରହିଛି । ଜର୍ମାନୀ

ଦେଶ ଏହି ବିଷୟରେ ସମସ୍ତଙ୍କଠାରୁ ବେଶୀ ଆଗୁଆ । ସେଠାରେ ପ୍ରତ୍ୟେକ ଛୋଟ ବଡ଼ ସହରର ମଧ୍ୟ ଆପଣାର ପତାକା ରହିଛି । ବାର୍ଷିକ ଉତ୍ସବ ପାଳନ କରିବାଲାଗି ପ୍ରତ୍ୟେକ ସହରର ଗୋଟିଏ ବିଶିଷ୍ଟ ଦିନ ରହିଥାଏ । ସେଦିନ ସହରର ସବୁଠାରେ ପତାକା ଉଡ଼େ, ହାତରେ ପତାକା ଧରି କେତେ ଆଡ଼ମ୍ବର ଓ ଉତ୍ସବ ଭିତରେ ଲୋକମାନେ ଶୋଭାଯାତ୍ରା କରି ବାହାରନ୍ତି ।

ଆମ ଭାରତବର୍ଷରେ ମଧ୍ୟ ଏହିପରି ପତାକା ରହିଛି । ଏଥିରେ ଥିବା ତିନୋଟି ରଙ୍ଗର ତିନୋଟି ଅର୍ଥ ରହିଛି । ଉପରେ ଥିବା କେଶରୀ ରଙ୍ଗ ସାହସ ଓ ତ୍ୟାଗକୁ ବୁଝାଏ । ମଝିରେ ଥିବା ଧଳା ରଙ୍ଗ ହେଉଛି ଶାନ୍ତିର ପ୍ରତୀକ । ସବାତଳେ ଥିବା ସବୁଜ ରଙ୍ଗ ଆମ ଦେଶର ମୈତ୍ରୀ ଓ ସଦ୍‌ଭାବର ଇଚ୍ଛା ପ୍ରକଟ କରୁଛି । ତେଣୁ ଏହି ପତାକାଟିକୁ ମନେ ରଖିବା ସଙ୍ଗେ ସଙ୍ଗେ ଆମକୁ ପ୍ରତୀକ ଗୁଡ଼ିକୁ ମଧ୍ୟ ମନେ ରଖିବାକୁ ପଡିବ । ଆମକୁ ଏହିସବୁ ପ୍ରତିକ ଗୁଡ଼ିକ ସ୍ମରଣ କରାଇ ଦେବାପାଇଁ ଜାତୀୟ ଉତ୍ସବର ଦିନମାନଙ୍କରେ ଏହି ପତାକା ଉତ୍ତୋଳନ କରାଯାଏ ।

ଆମ ଦେଶର ସ୍ୱାଧୀନତା ସଂଗ୍ରାମ ସହିତ ଆମ ପତାକାର ଇତିହାସ ଜଡ଼ିତ ହୋଇ ରହିଛି । ଏହି ପତାକାକୁ ହାତରେ ଧରି କେତେ ଧନୀ ଧନସମ୍ପଦ ଛାଡ଼ିଛନ୍ତି । କେତେ ସତ୍ୟାଗ୍ରହୀ କାରାବରଣ କରିଛନ୍ତି ଏବଂ କେତେ ଶହୀଦ ପ୍ରାଣବଳି ଦେଇଛନ୍ତି । ଦେଶ ସ୍ୱାଧୀନ ହେବା ପୂର୍ବରୁ ଏହି ପତାକାରେ ଚରଖାର ଚିହ୍ନ ଅଙ୍କିତ ଥିଲା । ଜାତୀୟ ସଂଗ୍ରାମର ଜନକ ମହାତ୍ମାଗାନ୍ଧୀ ଚରଖାରେ ଭାରତର ପ୍ରଧାନ ଅବଲମ୍ବନ ବୋଲି ଗ୍ରହଣ

କରିଥିଲେ । ସ୍ୱାଧୀନତା ପରେ ବିଧାନସଭା ବସି ଚରଖା ପରିବର୍ତ୍ତରେ ଆମ ପତାକାରେ ଅଶୋକ ଚିତ୍ର ରହିବ ବୋଲି ସ୍ଥିର କଲେ । ଏହି ଚକ୍ରକୁ ଧର୍ମଚକ୍ର ମଧ୍ୟ କୁହାଯାଏ । ବୁଦ୍ଧଦେବ ବୌଦ୍ଧଧର୍ମର ପ୍ରଚାର କଲାବେଳେ ଏହି ଚକ୍ରକୁ ମୈତ୍ରୀ ଓ କରୁଣାର ପ୍ରତୀକ ବୋଲି ଘୋଷଣା କରିଥିଲେ ।

ପତାକାପରି ପ୍ରତ୍ୟେକ ଦେଶର ସ୍ୱତନ୍ତ୍ର ଜାତୀୟ ସଂଗୀତ ମଧ୍ୟ ରହିଛି । ଜାତୀୟ ସଂଗୀତ ମଧ୍ୟ ଜାତି ବା ଦେଶର ଏକତାକୁ ପ୍ରକାଶ କରେ । ଗୋଟିଏ ଦେଶରେ ଆମେ ଯେତେ ଲୋକ ବାସକରୁ, ସେମାନଙ୍କର ସମସ୍ତଙ୍କର ସ୍ୱାର୍ଥ ଓ ଲକ୍ଷ୍ୟ ଗୋଟିଏ, ଜାତୀୟ ସଂଗୀତ ଦ୍ୱାରା ଆମେ ଏହି ସଂକଳ୍ପର ଘୋଷଣା କରୁ । ଏହି ଜାତୀୟ ସଂଗୀତ ଦେଶର ଲୋକମାନଙ୍କୁ ଅଦ୍‌ଭୁତ ପ୍ରେରଣା ଦେଇଥାଏ । ସୈନ୍ୟମାନେ ଏହି ସଂଗୀତ ଗାଇ ବିଦେଶୀ ଆକ୍ରମଣରୁ ଆପଣାର ଦେଶକୁ ରକ୍ଷା କରନ୍ତି । ସଭାସମିତି ଓ ଜାତୀୟ ଉତ୍ସବ ମାନଙ୍କରେ ହୃଦୟ ଭିତରେ ଜାତିର ଏକତାକୁ ଅନୁଭବ କରିବା ପାଇଁ ଜାତୀୟ ସଂଗୀତ ଗାନ କରାଯାଏ ।

ପ୍ରତ୍ୟେକ ଦେଶର ନଦୀ, ପର୍ବତ, ସମୁଦ୍ର ଓ ଅରଣ୍ୟ ସେହି ଦେଶର ପ୍ରତ୍ୟେକ ଲୋକକୁ ଖୁବ୍ ଭଲଲାଗେ । ସେଥିପାଇଁ ଆପଣା ଦେଶକୁ ଆମେ ମାତୃଭୂମି ବୋଲି କହୁ । ଇଉରୋପରେ ପିତୃଭୂମି ବୋଲି କହନ୍ତି । ଆପଣାର ଭାଷାକୁ ଆମେ ମାତୃଭାଷା ବୋଲି କହୁ । ମାତୃଭାଷା ଓ ମାତୃଭୂମିକୁ ଆମେ ଭଲପାଉ । ଆପଣା ଦେଶର ସମସ୍ତେ ସୁଖରେ ଓ ଶାନ୍ତିରେ ରହିବେ, ଭାଇଭାଇ ହୋଇ ରହିବେ, ସେଥିପାଇଁ ସବୁ ପ୍ରକାର କାମ କରିବାର ଦାୟିତ୍ୱ ଆମରି ଉପରେ ଥାଏ । ଆମର ଜାତୀୟସଂଗୀତ ଗାଇ ଦେଶପ୍ରତି

ଆମେ ଆମର ମମତା ପ୍ରକାଶ କରୁ, ଦେଶ ଗଢିବାର ଦାୟିତ୍ୱ ଗ୍ରହଣ କରିବାଲାଗି ଶପଥ ନେଉ ।

ବିଶ୍ୱକବି ରବୀନ୍ଦ୍ରନାଥ ପ୍ରାୟ ପଚାଶବର୍ଷ ତଳେ "ଜନଗଣ ମନ....." ସଂଗୀତ ରଚନା କରିଥିଲେ । ସେହି ସଂଗୀତରେ ପାଞ୍ଚଗୋଟି ପଦ ଥିଲା । ସେଥିରୁ ମୁଳ ଦୁଇପଦକୁ ସ୍ୱାଧୀନ ଭାରତର ଜାତୀୟ ସଂଗୀତ ରୂପେ ଗ୍ରହଣ କରାଯାଇଅଛି । ଭାରତର ଉଚ୍ଚ ପର୍ବତ ହିମାଳୟ ଓ ବିନ୍ଧ୍ୟ, ପବିତ୍ର ନଦୀ ସିନ୍ଧୁ ଓ ଗଙ୍ଗାନଦୀ, ଏବଂ ବିଭିନ୍ନ ପ୍ରାନ୍ତ ଗୁଡ଼ିକର ବର୍ଣ୍ଣନା ଏଥିରେ ରହିଛି । ବାହାରୁ ଯେତେବେଳେ ଯେଉଁ ବିଦେଶୀ ଏହି ଦେଶକୁ ଆସିଛନ୍ତି, ଭାରତବର୍ଷ ଅତି ଆଦରରେ ସେମାନଙ୍କୁ ସ୍ଥାନ ଦେଇଛି ଓ ସମସ୍ତଙ୍କର ଫୁଲରେ ଏକତାର ଗୋଟିଏ ପ୍ରୀତିହାର ଗୁନ୍ଥା ହୋଇଛି, ଆମ ଜାତୀୟ ସଂଗୀତରେ ଏହିକଥା ସ୍ମରଣ କରାଯାଇଛି ।

ମିଳିତ ଜାତିସଂଘରେ ପ୍ରାୟ ଦେଢ଼ଶହଟି ଦେଶ ସଭ୍ୟ ଅଛନ୍ତି । ତେଣୁ ଜାତିସଂଘର ବୈଠକ ବସିବାବେଳେ ପ୍ରତ୍ୟେକ ଦେଶର ପତାକା ସେହି ବୈଠକ ଘରେ ଶୋଭା ପାଉଥାଏ । ତାହାଦେଖି ସେଠାରେ ମଣିଷ ଜାତିକୁ ଗୋଟିଏ ପରିବାର ବୋଲି ମନେହୁଏ । ସବୁ ନଦୀମିଶି ସାଗର ତିଆରି ହେବାପରି ସବୁ ଦେଶର ମଣିଷ ମିଶି ବିଶ୍ୱ ପରିବାରର ସୃଷ୍ଟି ହୋଇଛି । ସେହି ପରିବାରର ମଧ ଗୋଟିଏ ସ୍ୱତନ୍ତ୍ର ପତାକା ରହିଛି । ତାହା ହେଉଛି ମିଳିତ ଜାତିସଂଘର ପତାକା ।



# ଭାରତର ଭାଷା

ପୃଥିବୀରେ ମୋଟ କେତୋଟି ଭାଷା ଅଛି, ତାହା ଗଣନା କରି କେହି କହି ପାରିବ ନାହିଁ । ଆମେ କେବଳ ଅଳ୍ପ କେତେଗୋଟି ବଡବଡ ଭାଷାର ନାମ ଜାଣିଛୁ, କାରଣ ସେହିସବୁ ଭାଷାରେ ବହି ଛପା ହୋଇଛି, ଖବର କାଗଜ ବାହାରୁଛି, ସେହିସବୁ ଦେଶକୁ ଆମେ ଯାଇଆସି ପାରୁଛୁ । କିନ୍ତୁ ତାହାଛଡ଼ା ଏପରି ଆହୁରି ଅନେକ ଭାଷା ଅଛି, ଯାହାର କି କୌଣସି ଲିପି ନାହିଁ । ସେସବୁ କେବଳ ଲୋକ ମୁଖରେ ରହିଛି । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକମାନେ ଆପଣାର କଥାବାର୍ତ୍ତାରେ ତାହାର ବ୍ୟବହାର କରୁଛନ୍ତି । ସେହି ଅଞ୍ଚଳକୁ କୌଣସି ରାସ୍ତା ନାହିଁ, କୌଣସି ରେଳଗାଡ଼ି ଯାଇନାହିଁ, ତେଣୁ ସେହି ସ୍ଥାନର ଅଧିବାସୀମାନେ ପୃଥିବୀର ଅନ୍ୟମାନଙ୍କ ସହିତ କୌଣସି ସମ୍ପର୍କରେ ଆସି ପାରୁନାହାନ୍ତି ।

ବୃହତ୍ ପୃଥିବୀର ଗୋଟିଏ କ୍ଷୁଦ୍ର ପ୍ରତିମୂର୍ତ୍ତି ଆମର ଏହି ଦେଶ ଭାରତବର୍ଷ । ଅତି ପ୍ରାଚୀନ କାଳରୁ କେତେକେତେ ଜାତି ବାହାରୁ ଆମଦେଶକୁ ଆସିଛନ୍ତି, କେତେ ବିଦେଶୀ ଏହି ଦେଶରେ ଆପଣାର ଘର କରି ରହି ଯାଇଛନ୍ତି । ଆଦିବାସୀ, ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କୁ ନେଇ ଭାରତର ସମାଜ ତିଆରି ହୋଇଛି । ତା'ଛଡ଼ା ପଠାଣ ଆସିଛନ୍ତି, ମୋଗଲ ଆସିଛନ୍ତି, ଇଉରୋପରୁ ଇଉରୋପୀୟମାନେ ମଧ୍ୟ ଆସିଛନ୍ତି । ତେଣୁ କାଶ୍ମୀରଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଏହି ବିଶାଳ ଦେଶରେ ଯେ ଭିନ୍ନଭିନ୍ନ ଭାଷା ରହିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ତଥାପି ଏହି ଭିନ୍ନଭିନ୍ନ

ଭାଷା ଯେ ଏକ ହଜାରରୁ ଅଧିକ ବର୍ଷହେଲା ଏ ଦେଶରେ ରହି ଆସିଛି, ପ୍ରତ୍ୟେକ ଭାଷାରେ ଯେ ଶହଶହ ବର୍ଷ ତଳେ ଶାସ୍ତ୍ର ପୁରାଣମାନ ଲେଖା ହୋଇଛି, ଏକଥା ଆମ ଦେଶ ପକ୍ଷରେ ଅତି ଗୌରବର ବିଷୟ ନୁହେଁ କି ?

ସ୍ୱାଧୀନତା ପାଇସାରିବା ପରେ ଆମ ଦେଶରେ ପ୍ରଧାନ ଭାଷା ଅନୁସାରେ ରାଜ୍ୟମାନଙ୍କର ଗଠନ କରାଯାଇଛି। ସେହି ଅନୁସାରେ ପ୍ରତ୍ୟେକ ରାଜ୍ୟରେ ତା'ର ନିଜର ଭାଷା ରହିଛି। ଯେମିତି ଆନ୍ଧ୍ରରେ ତେଲୁଗୁ, ମଧ୍ୟପ୍ରଦେଶ ଆଉ ବିହାରରେ ହିନ୍ଦୀ, ବଙ୍ଗଦେଶରେ ବଙ୍ଗଳା ଆଉ ଆମ ଓଡ଼ିଶାରେ ଓଡ଼ିଆ। ଆହୁରି ଦୂରକୁ ଗଲେ ଆସାମରେ ଆସାମୀ, ମାନ୍ଦ୍ରାଜରେ ତାମିଲ ଆଉ ପଞ୍ଜାବରେ ପଞ୍ଜାବୀ।

ଉତ୍ତର ଭାରତରେ ଯେତେ ବଡ଼ ଭାଷା ରହିଛି, ସଂସ୍କୃତ ଭାଷା ହେଉଛି ସେଗୁଡ଼ିକର ଜନନୀ। ସେଥିପାଇଁ ବଙ୍ଗଳା, ହିନ୍ଦୀ, ଗୁଜୁରାଟୀ ଓ ଓଡ଼ିଆ ପ୍ରଭୃତି ଭାଷାରେ ବହୁତ ସଂଖ୍ୟାରେ ସଂସ୍କୃତ ଶବ୍ଦ ରହିଛି, ଏହିସବୁ ଭାଷାର ବ୍ୟାକରଣ ମଧ୍ୟ ସଂସ୍କୃତ ଭାଷାର ଛାଞ୍ଚରେ ତିଆରି ହୋଇଛି। ଓଡ଼ିଶାର ଲୋକମାନେ ସହଜରେ ଓଡ଼ିଆ ଭାଷା ଶିଖି ଯାଆନ୍ତି, ହିନ୍ଦୀ ପଢ଼ିବାଲାଗି ଆମ ଓଡ଼ିଶାର ପିଲାମାନଙ୍କୁ ବେଶୀ କଷ୍ଟ ସହିବାକୁ ପଡେନାହିଁ। କାରଣ ଆମ ସମସ୍ତଙ୍କର ଭାଷାର ଉତ୍ପତ୍ତି ହୋଇଛି ଗୋଟିଏ ଭାଷାରୁ। ଦକ୍ଷିଣ ଭାରତର ପ୍ରଧାନ ଭାଷା ଚାରୋଟି। ପ୍ରାଚୀନ ଦ୍ରାବିଡ଼ ଭାଷାରୁ ସେଗୁଡ଼ିକର ଉତ୍ପତ୍ତି ହୋଇଛି। ତଥାପି କାଳକ୍ରମେ ସେଗୁଡ଼ିକରେ ଅନେକ ସଂସ୍କୃତ ଶବ୍ଦ ମଧ୍ୟ ପଶିଗଲାଣି। ଭାରତର ଇତିହାସ ପଢ଼ିଲେ ଆମେ ଏହାର କାରଣ ବୁଝିପାରିବା।

କିନ୍ତୁ ଏହିସବୁ ପ୍ରଧାନ ଭାଷା ବ୍ୟତୀତ ଭାରତରେ ଆହୁରି ଶହଶହ ଭାଷା ରହିଛି । ପାହାଡ଼ ଓ ଅରଣ୍ୟ ଅଞ୍ଚଳରେ ବାସ କରୁଥିବା ଆଦିବାସୀମାନେ ସେମାନଙ୍କର ନିଜଭାଷାରେ କଥାବାର୍ତ୍ତା କରନ୍ତି । ଓଡ଼ିଶାରେ ବିଭିନ୍ନ ଆଦିବାସୀ ଜାତି ଅନୁସାରେ ଶବର, କନ୍ଧ, ସାନ୍ତାଳ, ଜୁଆଙ୍ଗ, ଓରାମ ପ୍ରଭୃତି ନାନାପ୍ରକାର ଆଦିବାସୀ ଭାଷା ରହିଛି । ଆସାମ, ବିହାର ଓ ମଧ୍ୟପ୍ରଦେଶରେ ବହୁସଂଖ୍ୟାରେ ଆଦିବାସୀ ବାସ କରନ୍ତି । ସେମାନେ ଆପଣାର ଜାତି ଅନୁସାରେ ବିଭିନ୍ନ ପ୍ରକାର ଭାଷାରେ କଥାବାର୍ତ୍ତା କରନ୍ତି ।ଆଦିବାସୀ ଭାଷାଗୁଡ଼ିକର ସ୍ୱତନ୍ତ୍ର ଅକ୍ଷର ନାହିଁ, କିନ୍ତୁ ଅନେକ ଗୀତ ଅଛି । ରାତିରେ ଏକାଠି ବାଦ୍ୟ ବଜାଇ ନାଚିବାବେଳେ ଆଦିବାସୀମାନେ ଏହିସବୁ ଗୀତ ଗାଆନ୍ତି । ଆମ ଦେଶର ଓ ବିଦେଶର ଅନେକ ବଡବଡ ପଣ୍ଡିତ ଏହିସବୁ ଗୀତ ସଂଗ୍ରହ କରି ଗ୍ରନ୍ଥମାନ ପ୍ରକାଶ କରିଛନ୍ତି ।

ଗୋଟିଏ ଭାଷା ମଧ୍ୟ ବିଭିନ୍ନ ଅଞ୍ଚଳର ଲୋକଙ୍କ ମୁଖରେ ବିଭିନ୍ନ ପ୍ରକାରର ହୋଇଥାଏ । ଏହାକୁ 'ବୋଲି' କହନ୍ତି । ଆମ ଓଡ଼ିଆ ଭାଷାରେ ସେହିପରି କେତେକ 'ବୋଲି' ରହିଛି । କଟକର ଓଡ଼ିଆ ଠାରୁ ସମ୍ବଲପୁର ଜିଲ୍ଲାରେ କୁହାଯାଉଥିବା ଓଡ଼ିଆ ଅଲଗା ପ୍ରକାରର, ଗଞ୍ଜାମର ଓଡ଼ିଆ ବାଲେଶ୍ୱର ଜିଲ୍ଲାର ଓଡ଼ିଆ ସହିତ ସମାନ ନୁହେଁ । କଟକ ସହରର ଓଡ଼ିଆ ମଧ୍ୟ କଟକ ଜିଲ୍ଲାର ଗାଆଁ ଲୋକେ କହୁଥିବା ଓଡ଼ିଆ ଠାରୁ ବେଶ୍ ପୃଥକ୍ । ଖାଲି ଓଡ଼ିଆ କାହିଁକି, ଭାରତର ଅନ୍ୟାନ୍ୟ ଭାଷାରେ ମଧ୍ୟ ଅନେକ ବୋଲି ରହିଛି । ଇଂରାଜୀ ଓ ଅନ୍ୟାନ୍ୟ ବିଦେଶୀ ଭାଷାରେ ମଧ୍ୟ ଠିକ୍ ସେହିପରି ରହିଛି ।

ଅନେକ ସମୟରେ ଏହି ଭାଷାଲାଗି ମଣିଷ ମଣିଷ ଭିତରେ ବିବାଦ ଲାଗେ। କିନ୍ତୁ ଏହି ବିବାଦ କ୍ରମଶଃ ଦୂର ହୋଇଯାଉଛି। ମଟର, ରେଲ୍‌ଗାଡ଼ି, ଜାହାଜ ଓ ବ୍ୟୋମଯାନ ପ୍ରଭୃତି ଚାଲିବା ଫଳରେ ପୃଥିବୀ କ୍ରମେ କ୍ଷୁଦ୍ରତର ହୋଇଆସୁଛି, ମଣିଷ ସହିତ ମଣିଷର ପରିଚୟ ଅଧିକ ଘନିଷ୍ଠ ହୋଇ ଆସୁଛି। ଯେତିକି ଆମେ ପରସ୍ପରର ପାଖକୁ ଆସିବା, ପରସ୍ପରର ଦେଶ ଦେଖିବା, ସେତିକି ଆମେ ପରସ୍ପରର ଭାଷା ବୁଝି ପାରିବା, ସେତିକି ଆମ ସମସ୍ତଙ୍କ ପାଇଁ ଏକ ସାଧାରଣ ଭାଷା ହୋଇ ପାରିବ। ପୃଥିବୀରେ ସବୁ ମଣିଷଙ୍କର ଗୋଟିଏ ଭାଷା ହେଉ, ଏଥିପାଇଁ କେତେକ ବଡବଡ ପଣ୍ଡିତ ଏବେ ଗୋଟିଏ ଆନ୍ଦୋଳନ ଚଳାଇଛନ୍ତି।

ଭାରତର ରାଷ୍ଟ୍ରପତି ହେଉଛନ୍ତି ଭାରତର ଏକତାର ପ୍ରତୀକ। ସେହିପରି ଆଉ ଗୋଟିଏ ପ୍ରତୀକ ହେଉଛି ଆମର ରାଷ୍ଟ୍ରଭାଷା। ପ୍ରତ୍ୟେକ ଦେଶର ଏହିପରି ତା'ର ନିଜର ରାଷ୍ଟ୍ରଭାଷା ରହିଛି। ଋଷିଆରେ ପ୍ରାୟ ଦୁଇଶହ ଭିନ୍ନଭିନ୍ନ ଭାଷା କଥିତ ହେଉଥିଲେ ମଧ୍ୟ ସେଠାରେ ଗୋଟିଏ ଭାଷାକୁ ରାଷ୍ଟ୍ରର ଭାଷାରୂପେ ସ୍ୱୀକାର କରାଯାଇଛି। ସୁଇଜରଲାଣ୍ଡର ଲୋକେ ତିନୋଟି ଭାଷାକୁ ରାଷ୍ଟ୍ରଭାଷା ରୂପେ ଗ୍ରହଣ କରିଛନ୍ତି। ମିଳିତ ଜାତିସଂଘରେ ପାଞ୍ଚୋଟି ଭାଷାକୁ ସାଧାରଣ ଭାଷାରୂପେ ଗ୍ରହଣ କରାଯାଇଛି।



# ଶାନ୍ତି ନିକେତନ

କଲିକତାରୁ ପୁଣି ରେଲଗାଡିରେ ବସି ପଶ୍ଚିମକୁ ଶହେ ମାଇଲ ଗଲାପରେ ବୋଲପୁର ବୋଲି ଗୋଟିଏ ଛୋଟ ଷ୍ଟେଶନ ପଡେ। ବୋଲପୁରଠାରେ ଓହ୍ଲାଇ ଦୁଇମାଇଲ ଯିବାପରେ ଶାନ୍ତି ନିକେତନ।

ବିଶ୍ୱକବି ରବୀନ୍ଦ୍ରନାଥ ୧୯୦୧ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଶାନ୍ତି ନିକେତନ ବିଦ୍ୟାଳୟର ପ୍ରତିଷ୍ଠା କରିଥିଲେ। ପ୍ରଥମେ ଛଅଜଣ ଛାତ୍ରଙ୍କୁ ନେଇ ଗୋଟିଏ ଛୋଟିଆ ଘରେ ଏହି ବିଦ୍ୟାଳୟ ଆରମ୍ଭ ହୋଇଥିଲା। ବର୍ତ୍ତମାନ ସମସ୍ତ ପୃଥିବୀର ଏହା ଏକ ବିରାଟ ବିଶ୍ୱ ବିଦ୍ୟାଳୟ। ଦେଶ ବିଦେଶରୁ ଅନେକ ଛାତ୍ର ଏଠାକୁ ଅଧ୍ୟୟନ କରିବାକୁ ଆସନ୍ତି। ପୃଥିବୀର ଅନେକ ବଡ ବଡ ଅଧ୍ୟାପକମାନଙ୍କୁ ଏଠାରେ ଅଧ୍ୟାପନା କରିବାକୁ ନିମନ୍ତ୍ରଣ କରି ଅଣାଯାଏ। ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି କଲେଜର ଉଚ୍ଚତମ ଶିକ୍ଷା ପର୍ଯ୍ୟନ୍ତ ଏଠାରେ ବ୍ୟବସ୍ଥା ରହିଛି। ଚିତ୍ରବିଦ୍ୟା ଓ ସଂଗୀତ ଅଧ୍ୟୟନ କରିବାଲାଗି ମଧ୍ୟ ସ୍ୱତନ୍ତ୍ର ବିଭାଗ ରହିଛି।

ପିଲାଦିନେ ରବୀନ୍ଦ୍ରନାଥ କଲିକତାର ଗୋଟିଏ ସ୍କୁଲକୁ ପଢ଼ିବାକୁ ଯାଉଥିଲେ। ସ୍କୁଲ ଘରର ଚାରିକାନ୍ଥ ଭିତରେ ଆବଦ୍ଧ ରହି ପଢ଼ିବାକୁ ତାଙ୍କର ଆଦୌ ମନ ଲାଗୁ ନଥିଲା। କାଳେ ଚାରିଟାଯାକ କାନ୍ଥ ତାଙ୍କ ଉପରେ ଭୁଷୁଡ଼ି ପଡ଼ିବ, ଏଥିପାଇଁ ତାଙ୍କ ମନରେ ଭାରି ଭୟ ହେଉଥିଲା। ଶିକ୍ଷକ ତ ସାକ୍ଷାତ କଂସରାଜା, ପିଲାମାନେ ତାଙ୍କର ବଡ଼ ପାଟି ଆଉ ବେତ ମାଡ଼ର ଡ଼ରରେ ଥରହର ହେଉଥାନ୍ତି। କାହାରି ମନରେ ସରସତା ନଥାଏ। କେତେବେଳେ ଛୁଟି ହେବ, ପିଲାମାନେ ସେଥିପାଇଁ ଅପେକ୍ଷା କରି

ରହିଥାନ୍ତି । ରବୀନ୍ଦ୍ରନାଥ ଦିନେ ଏହି ସ୍କୁଲରୁ ଘରକୁ ପଳାଇଲେ । ତାଙ୍କର ବାପା ତାଙ୍କ ମନକଥା ବୁଝିପାରି ଘରେ ତାଙ୍କର ପଢ଼ିବାଲାଗି ବ୍ୟବସ୍ଥା କରିଦେଲେ ।

ବଡ଼ ହୋଇ ରବୀନ୍ଦ୍ରନାଥ କବି ହେଲେ, ପଣ୍ଡିତ ହେଲେ, ବିଖ୍ୟାତ ହେଲେ, କିନ୍ତୁ ପିଲାଦିନ ସେ ପାଠଶାଳାରେ ଯେଉଁ ଦୁଃଖ ଭୋଗ କରିଥିଲେ, ତାହା ତାଙ୍କ ମନରୁ ଯାଇନଥାଏ । କେତେକେତେ ପିଲା ନିତି ଦୁଃଖ ଭୋଗ କରୁନଥିବେ । ପିଲାଦିନରୁ ଏକ ଆଦର୍ଶ ପାଠାଶାଳାର ଯେଉଁ ଚିତ୍ର ତାଙ୍କ ମନରେ ଥିଲା, ସେହି ଅନୁସାରେ ସେ ଶାନ୍ତିନିକେତନର ଆନନ୍ଦ ପାଠଶାଳା ଆରମ୍ଭ କଲେ । ଉପରେ ଖୋଲା ଆକାଶ ରହିବ, ବଗିଚାରେ ବଡ ବଡ ଗଛଲତା ଆଉ ସୁନ୍ଦର ଫୁଲ ରହିବ, ଶିକ୍ଷକମାନେ ପିଲାମାନଙ୍କୁ ସ୍ନେହ ଓ ଆଦର କରିବେ, ପାଠଶାଳାଟି ପିଲାଙ୍କର ଠିକ୍ ଆପଣା ଘରପରି ହେବ, ପିଲାମାନେ ଆନନ୍ଦରେ ପାଠ ପଢ଼ିବେ, ଆନନ୍ଦରେ ଖେଳିବେ, ବୁଲିବେ ଆଉ କାମ କରିବେ, କାହାରି ମନରେ କୌଣସି ଭୟ ନଥିବ, ଶାନ୍ତି - ନିକେତନରେ ଏହିପରି ଗୋଟିଏ ତୀର୍ଥ ତିଆରି ହେଲା ।

ନୋବେଲ୍ ପୁରସ୍କାର ପାଇସାରି କବି ରବୀନ୍ଦ୍ରନାଥ ଇଉରୋପ ଓ ଆମେରିକାର ଅନେକ ଦେଶ ଭ୍ରମଣ କରିବାକୁ ଗଲେ । ଭ୍ରମଣରୁ ଫେରିଆସି ସେ ଶାନ୍ତି ନିକେତନରେ ଗୋଟିଏ ବିଶ୍ୱ ବିଦ୍ୟାଳୟ ଆରମ୍ଭ କଲେ । ସାରା ପୃଥିବୀର ବିଭିନ୍ନ ଦେଶରୁ ଛାତ୍ର ଛାତ୍ରୀମାନେ ଆସି ଏଠାରେ ଅଧ୍ୟୟନ କରିବାର ସୁଯୋଗ ପାଇବେ, ପାଠ ପଢ଼ିବା ସଙ୍ଗେ ସଙ୍ଗେ ସେମାନେ ପରସ୍ପର ସହିତ ବନ୍ଧୁତା ସ୍ଥାପନ କରିବେ, ପରସ୍ପରର ଦେଶକୁ ଜାଣିବେ, ପରସ୍ପରକୁ ଭଲ ପାଇବେ ଓ ପୃଥିବୀକୁ ଗୋଟିଏ ପରିବାର ବୋଲି ମନେ

କରିବେ। ଏହାଦ୍ୱାରା ପୃଥିବୀରୁ ଘୃଣା ଦୂରୀଭୂତ ହୋଇଯିବ ଓ କେହି ଅପରକୁ ଆପଣାଠାରୁ ଛୋଟବୋଲି ଭାବିବେ ନାହିଁ। ସାରା ବିଶ୍ୱର ଛାତ୍ରମାନେ ଏଠାରେ ଏକତ୍ର ହୋଇ ଅଧ୍ୟୟନ କରିବେ ବୋଲି ଏହି ବିଶ୍ୱ ବିଦ୍ୟାଳୟର ନାମ ବିଶ୍ୱଭାରତୀ ରଖାଗଲା।

ଶାନ୍ତିନିକେତନ ବର୍ତ୍ତମାନ ଅନେକ ବଡ ହୋଇଗଲାଣି। କିନ୍ତୁ ଆରମ୍ଭ କଲାବେଳେ ଏଥିପାଇଁ ରବୀନ୍ଦ୍ରନାଥଙ୍କୁ ଅନେକ କଷ୍ଟ ସହିବାକୁ ପଡ଼ିଥିଲା। ଆପଣାର ଜମିଦାରୀ, ଅନ୍ୟାନ୍ୟ ସମ୍ପତ୍ତି, ଏପରିକି ଆପଣା ପତ୍ନୀଙ୍କର ଅଳଙ୍କାର ବିକ୍ରୟକରି ସେ ଶାନ୍ତିନିକେତନକୁ ବଞ୍ଚାଇ ରଖିଥିଲେ। ଯିଏ କୌଣସି ନୂଆ କଥା ଆରମ୍ଭ କରେ, ତାକୁ ଏହିପରି ଅନେକ କଷ୍ଟ ଓ ବାଧାବିଘ୍ନ ସହ୍ୟ କରିବାକୁ ପଡ଼େ।

ଶାନ୍ତିନିକେତନରେ ଗୋଟିଏ ବଡ଼ ଗ୍ରନ୍ଥାଗାର ଅଛି। ସେଠାରେ ବହିଗୁଡ଼ିକ ଖୋଲା ଥାକରେ ରଖାଯାଇଛି। ସାନ ବଡ଼ ସମସ୍ତେ ଅବାଧରେ ଗ୍ରନ୍ଥାଗାର ଭିତରକୁ ଯାଇ ଅଧ୍ୟୟନ କରନ୍ତି। ଘରକୁ କୌଣସି ବହି ନେବାର ହେଲେ ନିଜେ ଥାକରୁ ବହିଟି ଆଣି ଆପଣାର ନାମରେ ଲେଖାଇ ନେଇଯାନ୍ତି। ଭାରତର ପ୍ରତ୍ୟେକ ବଡ଼ ଭାଷାର ଗ୍ରନ୍ଥମାନ ସେଠାରେ ଅଛି। ଇଂରେଜୀ ବ୍ୟତୀତ ଚୀନ, ଜାପାନ, ତିବ୍ବତ, ଜର୍ମାନୀ, ଋଷିଆ ଓ ଆହୁରି ଅନେକ ବିଦେଶୀ ଭାଷାର ହଜାର ହଜାର ଗ୍ରନ୍ଥ ସେଠାରେ ସୁରକ୍ଷିତ ହୋଇ ରହିଛି।

ଶାନ୍ତିନିକେତନରେ ଆଜି ପିଲାମାନେ ଯେପରି ଖୁସି ହୋଇ ପାଠ ପଢୁଛନ୍ତି, ଆମ ଦେଶର ସବୁ ପିଲାଏ ସେହିପରି ପାଠ ପଢ଼ିବାର ସୁଯୋଗ ପାଇଲେ ତାହା କେତେ ଆନନ୍ଦର କଥା ହୁଅନ୍ତାନାହିଁ ?

❖

# କେରଳ ଯାତ୍ରା

**ବ**ଡ଼ଭାଇଙ୍କ ସହିତ କେରଳରେ ଯିବାପାଇଁ ଯେଉଁଦିନ ରମେଶ କଟକ ଷ୍ଟେସନରୁ ଗାଡ଼ି ଚଢ଼ିଲା, ସେଦିନ ତା'ର ମନ ଭିତରଟା ଖାଲି ଖୁସିରେ ପୂର୍ଣ୍ଣହୋଇ ରହିଥାଏ। କେତେବର୍ଷତଳେ ଅତି ପିଲାଦିନେ ରଥଯାତ୍ରା ଦେଖିବା ପାଇଁ ଯାହା ସେ ବୋଉ ସାଙ୍ଗରେ ପୁରୀ ଯାଇଥିଲା, ସେତିକି। ତା'ପରେ ଏହି ଦଶବର୍ଷ ମଧରେ ତା ଭାଗ୍ୟରେ ଆଉ ରେଳଗାଡି ଚଢ଼ିବା ବେଳେ ଘଟିନଥିଲା ତା'ର ଆଖି ଯେପରି କେତେ କଳ୍ପନାର ଘୋଡ଼ା ଉପରେ ଚଢି କେତେ ଦୂରକୁ ପ୍ରବାସକରି ବାହାରିଥାଏ।

ରାତି ପାହିଲାବେଳକୁ ଭାଇଙ୍କର ଡ଼ାକ ଶୁଣି ସେ ଧଡପଡ ହୋଇ ଉଠିବସିଲା। ଚିଲିକାର ପାଣି ଉପରେ ସେତେବେଳକୁ ସୂର୍ଯ୍ୟ ଉଦୟ ହେଉଥାନ୍ତି। ସତେ ଚିଲିକା କେତେ ସୁନ୍ଦର ! ବହିରେ ସେ ଚିଲିକା ବିଷୟରେ ଯେତିକି ପଢ଼ିଥିଲେ, ତାହାଠାରୁ ଅନେକ ବେଶୀ। ବହିରେ ପଢ଼ିବା କି କେବେ ଆଖିରେ ଦେଖିବାର ସମତୁଲ ହୋଇପାରିବ ?

ଗାଡି ଦକ୍ଷିଣମୁହାଁ ହୋଇ ଚାଲିଥାଏ। ଓଡ଼ିଶା ଯାଇ ଆନ୍ଧ୍ରପ୍ରଦେଶ ପଡିଲା। ନୂଆ ନୂଆ ଲୋକ ଡ଼ବା ଭିତରକୁ ଆସିଲେ। ସେମାନଙ୍କର ଭାଷା ରମେଶ ଆଦୌ ବୁଝି ପାରୁନଥାଏ। ବାହାରକୁ ଅନାଇ ସେ ଦୁଇପାଖର ଦୃଶ୍ୟ ଦେଖୁଥାଏ। ସବୁଜ ଧାନବିଲ, ଧାଡି ଧାଡି ତାଳ ଆଉ ଖଜୁରୀ ଗଛ,– ତାହାରି ମଝିରେ ଗୋଟିଏ ଗୋଟିଏ ଛୋଟିଆ ଗାଆଁ। ଘରଗୁଡ଼ିକ

ଭାରି ନୂଆଁଣିଆ, ତାଳ ବରଡାରେ ଛପର ହୋଇଛି । ମଝିରେ ଯେଉଁଠାରେ ଛୋଟ ବଡ଼ ସହର ପଡୁଛି, ସେଠାରେ ନାଲି ଖପରର ଛାତ । ଖରାବେଳକୁ ଗୋଟିଏ ବଡ ଷ୍ଟେସନ ପଡ଼ିଲା । ସେଠାରେ ଗାଡି ବେଶୀ ସମୟ ପର୍ଯ୍ୟନ୍ତ ରହିବ । ଭାଇଙ୍କ ସହିତ ରମେଶ ବାହାରକୁ ଖାଇବାକୁ ଗଲା । ଭାରି ପରିଷ୍କାର ଖାଇବା ଓ ଖାଇବାର ବ୍ୟବସ୍ଥା,- କଟକପରି ମଇଳା ନୁହେଁ । କଦଳୀ ପତର ଉପରେ ଭାତ ବଢ଼ା ହେଲା, ଭାତରେ ଘିଅ ପଡ଼ିଲା, ପୁଣି ଖାଇବା ଶେଷରେ ମନଇଚ୍ଛା ପିଇବାକୁ ଦହି ଦିଆଗଲା । ତା'ଛଡ଼ା ଚାରୁ, ସମ୍ବର, ଆଚାର ଓ ଆହୁରି କେତେ ନୂଆ ନୂଆ ନାମର ନୂଆ ନୂଆ ଖାଇବା ଜିନିଷ । ରମେଶକୁ ଭାରି ଭଲ ଲାଗୁଥାଏ । ପିଲାଦିନୁ ମିଠା ଅପେକ୍ଷା ଖଟା ଖାଇବାକୁ ସେ ଅଧିକ ଭଲ ପାଉଥିଲା ।

ସେଦିନ ସଂଜବେଳକୁ ଗାଡ଼ି ଗୋଦାବରୀ ନଦୀ ପାରହେଲା । ପୁଣି ପାହାନ୍ତାକୁ ପଡ଼ିଲା କୃଷ୍ଣା ନଦୀ । ଭାଇ ଦେଇଥିବା ଭାରତବର୍ଷର ମାନଚିତ୍ରରୁ ରମେଶ ସରିଯାଉଥିବା ରାସ୍ତା ଦେଖି ନେଉଥାଏ । ଶେଷକୁ ଗାଡ଼ି ମାନ୍ଦ୍ରାଜରେ ପହଞ୍ଚିଲା । ରମେଶ ଏତେ ବଡ଼ ଗୋଟାଏ ଷ୍ଟେସନ ଆଗରୁ ଦେଖିନଥିଲା । ସେହିଠାରେ ଗାଧୁଆ ପାଧୁଆ ଓ ଖିଆପିଆ ଶେଷକଲା ପରେ ସେମାନେ କୋଚିନ ଯିବାକୁ ଗାଡ଼ି ଚଢିଲେ । ତାମିଲ ଦେଶର ଭାଷା ଆନ୍ଧ୍ର ଭାଷାଠାରୁ ଆହୁରି ଫରକ୍ । ରମେଶ ବୋକାଙ୍କପରି ଲୋକମାନଙ୍କ କଥା ଶୁଣିବାରେ ଲାଗିଥାଏ, କିଛି ବୁଝି ନ ପାରିଲେ ମଧ୍ୟ ତାକୁ ଶୁଣିବାକୁ ଭାରି ଭଲ ଲାଗୁଥାଏ ।

ପ୍ରାୟ ଚବିଶି ଘଣ୍ଟା ଗାଡ଼ିରେ ବସିବା ପରେ ସେମାନେ କୋଚିନ

ଷ୍ଟେସନରେ ଓହ୍ଲାଇଲେ। ଭାରତର ପଶ୍ଚିମ ଉପକୂଳରେ କୋଚିନ ହେଉଚି ଗୋଟିଏ ବଡ଼ ବନ୍ଦର ଓ ବ୍ୟବସାୟ କେନ୍ଦ୍ର। ଏହିଠାରୁ ପ୍ରତ୍ୟେକ ଦିନ ଜାହାଜ ମାଲପତ୍ର ବୋଝେଇ କରି ବିଦେଶକୁ ଯାଏ, ପ୍ରତ୍ୟେକ ଦିନ ଅନେକ ବିଦେଶୀ ଜାହାଜ ମଧ୍ୟ ଏହି ବନ୍ଦରକୁ ଆସେ। ଭାଇ ରମେଶକୁ ବନ୍ଦର ଦେଖାଇନେଲେ। ବିଭିନ୍ନ ଦେଶର ଆଠ ଦଶଟି ଜାହାଜ ସେଦିନ ପୋତାଶ୍ରୟରେ ନଙ୍ଗର ପକାଇଥାଏ। ପ୍ରତ୍ୟେକ ଜାହାଜରେ ବିଭିନ୍ନ ଦେଶର ପତାକା ଉଡୁଥାଏ। ଗୋଟିଏ ଜାହାଜର ଭିତରକୁ ଯାଇ ରମେଶ ସବୁକଥା ବୁଲି ଦେଖିଲା। ଇଞ୍ଜିନ୍‌ଘର ମାଲ୍‌ଭଣ୍ଡାର, ଯାତ୍ରୀଘର, ରୋଷେଇ ଓ ଖାଇବା ଘର,- ସବୁ ମିଶି ପାଣି ଉପରେ ଗୋଟିଏ ଛୋଟିଆ ସଂସାର ମଣିଷ ଲାଗି ତିଆରି ହୋଇଛି। ରମେଶ ଆଗରୁ କେବେ ଜାହାଜ ଦେଖିନଥିଲା। ପୂର୍ବକାଳରେ ଓଡ଼ିଶାର ସାଧବମାନେ ବୋଇତ ଭସାଇ ବିଦେଶକୁ ଯାଉଥିଲେ ବୋଲି ସେ ବହିରେ ପଢ଼ିଥିଲା। ରମେଶ ଭାବୁଥାଏ, ଓଡ଼ିଶାରେ ପାରାଦୀପ ବନ୍ଦର ସଂପୂର୍ଣ୍ଣ ହୋଇଗଲେ ସେଠାକୁ ମଧ୍ୟ ଏହିପରି ବିଭିନ୍ନ ପ୍ରକାରର ବଡ ବଡ ଜାହାଜ ଆସିବ।

ତହିଁଆରଦିନ ସକାଳେ ମଟର ଚଢ଼ି ସେମାନେ ଆହୁରି ଦକ୍ଷିଣକୁ ବାହାରିଲେ। ଦୁଇପାଖରେ ସମୁଦ୍ରର ପାଣି ହ୍ରଦପରି ସ୍ଥଳଭାଗ ଭିତରକୁ ବିସ୍ତୀର୍ଣ୍ଣ ହୋଇ ରହିଛି। ସ୍ଥଳଭାଗ ଗୋଟିଏ ଗୋଟିଏ ଦ୍ୱୀପପରି ଦେଖାଯାଉଥାଏ। କେରଳ ରାଜ୍ୟଟାଯାକ ଯେପରି ଗୋଟିଏ ବଡ ଉଦ୍ୟାନ। ଏତେ ନଡ଼ିଆଗଛ ରମେଶ ଗୋଟାଏ ଯାଗାରେ କେବେ ଦେଖିନଥିଲା। କେରଳ ଶବ୍ଦର ଅର୍ଥ ହେଉଛି ନଡ଼ିଆର ଦେଶ। ପୁରାଣରେ ଥିବା ଗୋଟିଏ

କାହାଣୀ ଭାଇ ରମେଶଙ୍କୁ କହିଦେଲେ। ପୁରଶୁରାମ ଆପଣାର ସମସ୍ତ ରାଜ୍ୟ ଦାନ କରିଦେବାପରେ ଦକ୍ଷିଣା ଦେବାଲାଗି ତାଙ୍କର ଆଉ କୌଣସି ରାଜ୍ୟ ବାକି ରହିଲାନାହିଁ। ତେଣୁ ସେ ଆପଣାର ପରଶୁକୁ ସମୁଦ୍ର ଭିତରକୁ ନିକ୍ଷେପ କଲେ। ସମୁଦ୍ରଭିତରେ ପରଶୁ ଯାଇ ଯେଉଁଠାରେ ପଡ଼ିଲା, ସେହି ଆକ୍ରାନ୍ତର ଜଳଭାଗ ସଙ୍ଗେ ସଙ୍ଗେ ସ୍ଥଳ ହୋଇଗଲା ଏବଂ ପରଶୁରାମ ସେହି ଭୂମିକୁ ଦକ୍ଷିଣାରୂପେ ଦେଇଥିଲେ। ଏହି ସ୍ଥଳଭାଗଟି ହେଉଛି କେରଳ। ଏହାର ଗୋଟିଏ ପାଖରେ ପର୍ବତ ଓ ଆଉ ଗୋଟିଏ ପାଖରେ ସମୁଦ୍ର। କେରଳର ଭାଷାରେ ମଲୟର ଅର୍ଥ ପର୍ବତ ଓ ଆଡ଼ୀର ଅର୍ଥ ସମୁଦ୍ର; ତେଣୁ ଦେଶଟିର ନାମ ହେଉଛି ମଲୟାଡ଼ୀ।

କେରଳରେ ଓଡ଼ିଶାପରି ଗାଆଁ ନାହିଁ। ପ୍ରତ୍ୟେକ ଚାଷୀର ଅଲଗା ଅଲଗା ଘର, ଘର ଚାରିପାଖରେ ଚାଷୀର ଚାଷଜମି ଓ ବଗିଚା। ବଗିଚାରେ ନଡ଼ିଆଗଛ ବ୍ୟତୀତ ପଣସ ଆଉ ଟାପିଓକା ଗଛ ଅଛି। ଧାନକୁ ଛାଡ଼ିଦେଲେ ପଣସ ଓ ଟାପିଓକାର ମୂଳ କେରଳର ଲୋକମାନଙ୍କର ପ୍ରଧାନ ଖାଦ୍ୟ। ପ୍ରାୟ ପ୍ରତ୍ୟେକ ଗଛରେ ଗୋଲମରିଚର ଲତା ମାଡ଼ିଛି। ଲୋକମାନେ ଖୁବ୍ ପରିଷ୍କାର ପରିଛନ୍ନ, ସମସ୍ତେ ଲୁଙ୍ଗି ପିନ୍ଧନ୍ତି। ସ୍କୁଲ, କଲେଜ ଓ କଚେରୀକୁ ଲୁଙ୍ଗି ପିନ୍ଧି ଆସିବାକୁ ସେଠାରେ କେହି ଅଭଦ୍ରତା ବୋଲି ମନେ କରନ୍ତି ନାହିଁ।

ପ୍ରାୟ ଶହେ ମାଇଲର ଅଧିକ ବାଟ ମଟରରେ ଆସିବାପରେ ସେମାନେ କେରଳର ରାଜଧାନୀ ତ୍ରିବାନ୍ଦ୍ରମ୍‌ରେ ପହଞ୍ଚିଲେ। ତ୍ରିବାନ୍ଦ୍ରମ୍‌ର ପ୍ରକୃତ ନାମ ହେଉଛି ତିରୁଅନନ୍ତପୁରମ୍। ତିରୁ ଅର୍ଥ ପବିତ୍ର। ଅନେକ

କାଳରୁ ସେଠାରେ ଅନନ୍ତ ଅର୍ଥାତ୍ ମହାଦେବଙ୍କର ମନ୍ଦିର ଅଛି । ସେହି ଅନୁସାରେ ସହରର ନାମକରଣ ହୋଇଛି । ସେଠାରେ ରମେଶ ଯାଦୁଘର ଓ ଚିଡ଼ିଆଖାନା ଦେଖିଲା । ସହରଟି କେଡେ ପରିଷ୍କାର ଚାରିଆଡେ ପାର୍କ ଓ ଫୁଲବଗିଚା । ରାସ୍ତାର ଦୁଇକଡ଼ରେ ଲଗାଯାଇଥିବା ଗଛ ମାନଙ୍କରେ କେତେରଙ୍ଗର ଫୁଲସବୁ ଫୁଟିଛି ।

ତ୍ରିବାନ୍ଦ୍ରମ୍‌ରୁ ଆହୁରି ଦକ୍ଷିଣକୁ ମଟରରେ ପ୍ରାୟ ଅଶୀମାଇଲ ଗଲେ କନ୍ୟାକୁମାରୀ, ଭାରତବର୍ଷର ଶେଷଭୂମି । ସେହିସ୍ଥାନର ପ୍ରାକୃତିକ ଶୋଭା ଦେଖି ରମେଶ ଏକାବେଳକେ ମୁଗ୍ଧ ହୋଇଗଲା । ତିନି ସମୁଦ୍ରର ଜଳ ସେଠାରେ ଭାରତମାତାର ପଦ ଧୌତ କରୁଛନ୍ତି । ସେମାନେ କନ୍ୟାକୁମାରୀରେ ସୂର୍ଯ୍ୟାସ୍ତ ଦେଖିଲେ ।

କେରଳ ମହାତ୍ମା ଶଙ୍କରାଚାର୍ଯ୍ୟର ଜନ୍ମଭୂମି । ପୂର୍ଣ୍ଣାନଦୀ କୂଳରେ ଥିବା କାଲାଡ଼ି ଗ୍ରାମରେ ସେମାନେ ଶଙ୍କରାଚାର୍ଯ୍ୟଙ୍କର ମନ୍ଦିର ଦେଖିବାକୁ ଯାଇଥିଲେ । ଦକ୍ଷିଣରୁ ପଦବ୍ରଜରେ ବାହାରି ଶ୍ରୀ ଶଙ୍କରାଚାର୍ଯ୍ୟ ଭାରତର ସବୁ ତୀର୍ଥ ଭ୍ରମଣ କରିଥିଲେ ଓ ଦିଗ୍‌ବିଜୟୀ ପଣ୍ଡିତ ହୋଇଥିଲେ । ସଂସ୍କୃତଭାଷାରେ ସେ ଅନେକ ଗ୍ରନ୍ଥ ରଚନା କରି ଯାଇଛନ୍ତି । ତାଙ୍କରି ସମୟଠାରୁ ସଂସ୍କୃତର ଅନେକ ଶବ୍ଦ ଦକ୍ଷିଣଭାରତର ଭାଷାରେ ପ୍ରବେଶ କରିବାକୁ ଆରମ୍ଭ କରିଛି ।

ସମଗ୍ର ଭାରତବର୍ଷରେ କେରଳ ସବୁଠାରୁ ଅଧିକ ଶିକ୍ଷିତ ରାଜ୍ୟ । ସେଠାରେ ସ୍ତ୍ରୀ ଓ ପୁରୁଷ ଉଭୟେ ଶିକ୍ଷିତ । ସାରା ଭାରତରେ ଶତକଡ଼ା

ଅଠରଜଣ ଲୋକ ପଢ଼ିଲେଖି ଜାଣିଥିବାସ୍ଥଳେ କେରଳରେ ଶତକଡ଼ା ପଞ୍ଚଷଠି ଜଣ ଲୋକ ସ୍ୱାକ୍ଷର ବୋଲି ଜଣାଯାଇଛି ।

ପ୍ରାୟ ପନ୍ଦର ଦିନ ପରେ ରମେଶ କେରଳରୁ ଫେରିଆସିଲା । ଏହି ପନ୍ଦରଦିନ ଭିତରେ ଯେପରି ସେ କେଡ଼େବଡ଼ ପଣ୍ଡିତ ହୋଇଯାଇଛି । ପ୍ରକୃତରେ ସେ ଏଥର ଅନେକ କଥା ଦେଖିଲା, ଶୁଣିଲା ଓ ଅନେକ ଲୋକଙ୍କ ସହିତ ପରିଚିତ ହେଲା । ସେ ଭାବୁଥାଏ ସବୁ ଛୁଟିରେ ଭାଇ ତାକୁ ଏହିପରି ଗୋଟିଏ ଗୋଟିଏ ଦୂର ଜାଗାକୁ ବୁଲାଇ ନେଉଥାନ୍ତେ କି !



# ପୋଲିସ୍

ତିରିଶି ବର୍ଷତଳେ ଆମଦେଶରେ ପୋଲିସ୍‌ର ନାଆଁ ଶୁଣିଲେ ଲୋକମାନଙ୍କର ହୃତ୍‌କମ୍ପ ହେଉଥିଲା । ଲୋକେ ପୋଲିସ୍‌କୁ ଯମଠାରୁ ଅଧିକ ଭୟ କରୁଥିଲେ । ଯଦି ପୋଲିସ୍ କୌଣସି ଗ୍ରାମକୁ କୌଣସି କାର୍ଯ୍ୟରେ ଆସୁଥିଲେ, ତେବେ ସେହି ଗ୍ରାମର ଲୋକମାନେ ସମସ୍ତେ କବାଟ ପକାଇ ଆପଣା ଆପଣା ଘରଭିତରେ ଲୁଚି ରହୁଥିଲେ । ଲୋକଙ୍କର ସେବା କରିବା ହେଉଛି ପୋଲିସ୍‌ର କାମ । କିନ୍ତୁ ସେକାଳରେ ଲୋକମାନେ ପୋଲିସ୍‌ର ସେବା କରୁଥିଲେ । ପୋଲିସ୍ ଯେତେବେଳେ ଯେଉଁ ପଦାର୍ଥ ଦରକାର କରୁଥିଲେ, ଲୋକମାନେ ତତ୍‌କ୍ଷଣାତ୍ ତାହା ଯୋଗାଇ ଦେବାକୁ ବାଧ ହେଉଥିଲେ । ଦେଶରେ ଶାନ୍ତି ରକ୍ଷା କରିବା ପରିବର୍ତ୍ତେ ପୋଲିସ୍ ବିଭାଗର କର୍ମଚାରୀମାନେ ସେତେବେଳେ ଅଧିକ ଆତଙ୍କ ଓ ଅଶାନ୍ତି ସୃଷ୍ଟି କରୁଥିଲେ ।

କୌଣସି ସ୍ଥାନରେ ଚୋରି କିମ୍ବା ଫୌଜଦାରୀ ହେଲେ ପୋଲିସ୍‌ଙ୍କୁ ତ ପୁଷମାସ ପଡୁଥିଲା ବୋଲି କହିବାକୁ ହେବ । ଗାଆଁକୁ ଆସି ସେମାନେ ନାନା ପ୍ରକାର ଭୟ ଓ ଧମକ ଦେଖାଇ ଲୋକମାନଙ୍କୁ ଅସ୍ତବ୍ୟସ୍ତ କରି ପକାଉଥିଲେ । ସେମାନେ ଯେଉଁ ଲୋକକୁ ଅପରାଧୀ ବୋଲି ସନ୍ଦେହ କରୁଥିଲେ, ତାହା ଉପରେ ଯାବତୀୟ ପ୍ରକାରର ଅତ୍ୟାଚାର କରିବାକୁ ସେମାନେ ଆଦୌ କୁଣ୍ଠିତ ହେଉ ନଥିଲେ । କେତେବେଳେ ବେତମାଡ଼ ହେଉଥିଲା ତ କେତେବେଳେ ମଣିଷକୁ ଶୁଆଇ ତା'ର ଛାତି ଉପରେ ପଥର ଲଦି ଦିଆଯାଉଥିଲା । ବିଧା ଆଉ ଚଟକଣାର ତ ବେଳଅବେଳ

ନଥିଲା । ମାଡ଼ ମାରିଲେ ଯେ ମଣିଷର ମନଭିତରୁ ସତକଥା ବାହାରେ, ଏହିପରି ଏକ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ପୂର୍ବେ ପୋଲିସ୍ ଏପରି ଦୁର୍ବ୍ୟବହାରମାନ କରୁଥିଲେ ।

ସେହି ଦିନଠାରୁ ପୋଲିସ୍ ସମ୍ବନ୍ଧରେ ଲୋକମାନଙ୍କର ମନରେ ଖୁବ୍ ଖରାପ ଧାରଣା ରହିଯାଇଛି । ତଥାପି ଦେଶରେ ଶିକ୍ଷା ଏବଂ ସଭ୍ୟତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଏହି ଧାରଣା କ୍ରମେ ପରିବର୍ତ୍ତିତ ହୋଇଯାଉଅଛି । ପୋଲିସ୍‌ମାନେ ମଧ୍ୟ ଏଣିକି ନୂଆ ପ୍ରକାର ଶିକ୍ଷା ପାଇଲେଣି । ଆଗେ ବିଦେଶୀ ଶାସନର ଅମଳରେ କେବଳ ଲୋକମାନଙ୍କୁ ଭୟ ପ୍ରଦର୍ଶନ କରିବାଲାଗି ସେମାନେ ଶିକ୍ଷା ଲାଭ କରୁଥିଲେ । ବିଦେଶୀ ଶାସକଙ୍କର ଲାଭ ଓ ସୁଖସୁବିଧାପାଇଁ ଏହି ଦେଶର ଶାସନ ଚାଲୁଥିଲା । କେହି ଲୋକମାନଙ୍କର ଭଲ ଚିନ୍ତା କରୁନଥିଲେ । ପୋଲିସ୍‌ମାନଙ୍କୁ ମଧ୍ୟ ଉପରେ ଥିବା ହାକିମମାନେ ମଣିଷପରି ଦେଖୁନଥିଲେ । କିନ୍ତୁ ସ୍ୱାଧୀନ ଦେଶର ପୋଲିସ୍ ହିସାବରେ ସେମାନେ ଆଜି ନୂଆ ପ୍ରକାରର ତାଲିମ ପାଉଛନ୍ତି । ଆଜି ସେମାନଙ୍କୁ ତାଲିମ ଦେବାଲାଗି ନୂଆନୂଆ ସ୍କୁଲ ଓ କଲେଜ ସ୍ଥାପିତ ହେଲାଣି । ଲୋକମାନଙ୍କର ସେବା କରିବାର ଉଚିତ ଶିକ୍ଷା ପାଇ ସେଠାରେ ସେମାନେ ସମାଜର ସେବକ ଓ ବନ୍ଧୁ ହେବାକୁ ପ୍ରସ୍ତୁତ ହେଉଅଛନ୍ତି ।

ଅନେକ ସମୟରେ ପୋଲିସ୍‌ର ପରିଚ୍ଛଦଟା ଲୋକମାନଙ୍କର ମନରେ ଭୟର ସଞ୍ଚାର କରିଥାଏ । ଏହି ପୋଷାକଟା ଅନେକ ସମୟରେ ଲୋକମାନଙ୍କଠାରୁ ସେମାନଙ୍କୁ ଦୂର କରି ରଖେ । ସେହି ପୋଷାକ ପିନ୍ଧିଲେ, ମନୁଷ୍ୟ ପ୍ରକୃତରେ ଯେତେ ଭୟଙ୍କର ନୁହେଁ, ତାହାଠାରୁ ଅଧିକ ଭୟଙ୍କର

ଦେଖାଯାଏ । ସେମାନଙ୍କୁ ଦୂରରୁ ଦେଖିଲେ କେଉଁ ଯମ ବା ଚଣ୍ଡୀଙ୍କର ଦୂତପରି ମନେହୁଏ । ବିଶେଷତଃ ଆମ ଦେଶର ଗ୍ରାମାଞ୍ଚଳରେ ଲୋକମାନେ ଯେପରି ସାଧାସିଧା ପୋଷାକ ପିନ୍ଧିଥାଆନ୍ତି, ସେଠାରେ ହଠାତ୍ ଜଣେ ପୋଲିସ୍ ଆସି ପହଞ୍ଚିଲେ ତାକୁ ଦେଖି ଆପଣାର ଲୋକଭଳି ମନେ ହୁଏନାହିଁ । ଆପଣାର ସେବକ ପରି ମନେହୁଏ ନାହିଁ । ଅନ୍ୟାନ୍ୟ ଦେଶମାନଙ୍କରେ ପୋଲିସ୍‌ର ପୋଷାକକୁ ଯଥାସମ୍ଭବ ସୁନ୍ଦର ଓ ସହଜ କରିବାର ଚେଷ୍ଟା କରାଯାଉଛି । ତଦ୍ୱାରା ପୋଲିସ୍ ବା ଜନସାଧାରଣ କେହି ଆପଣାକୁ ଅପରର ଶତ୍ରୁ ବୋଲି ମନେ କରୁନାହାନ୍ତି ।

ଇଂଲଣ୍ଡର ପୋଲିସ୍, ବିଶେଷକରି ଲଣ୍ଡନ ସହରର ପୋଲିସ୍‌ଙ୍କର କଥା ତ ପୃଥିବୀର ସବୁଦେଶରେ କାହାଣୀ ପରି ହୋଇ ରହିଛି । ଲୋକମାନଙ୍କୁ ସବୁମତେ ସାହାଯ୍ୟ କରିବାପାଇଁ ସେମାନଙ୍କର ତତ୍ପରତା ପ୍ରକୃତରେ ଅନୁକରଣୀୟ ଓ ଅତୁଳନୀୟ । ସେମାନଙ୍କର ଶାନ୍ତ ଓ ସହାନୁଭୂତି ପୂର୍ଣ୍ଣ ବ୍ୟବହାର ବିଦେଶୀକୁ ସବୁବେଳେ ମୁଗ୍ଧ କରିଦିଏ । ଲଣ୍ଡନ ସହର ସମସ୍ତ ପୃଥିବୀରେ ଏକ ଅତି ବୃହତ୍ ସହର । ଆଖି ପିଛୁଳାକେ ସେଠାରେ ରାସ୍ତାଉପରେ କେତେ ଗାଡ଼ି, ମଟର ଓ ସାଇକେଲ ଯାତାୟାତ କରୁଛି । ସର୍ବଦା ଲୋକଙ୍କର ଭିଡ଼ ଲାଗିରହିଛି । ସେଠାରେ ପୋଲିସ୍‌ମାନେ ଯେପରି ଦକ୍ଷତା ଓ ଧୈର୍ଯ୍ୟସହକାରେ ଯାତାୟାତର ନିୟନ୍ତ୍ରଣ କରନ୍ତି, ତାହା ଦେଖିଲେ ପ୍ରକୃତରେ ଆଶ୍ଚର୍ଯ୍ୟ ହେବାକୁ ପଡେ । ପୁଣି ପ୍ରତ୍ୟେକ ଛକଯାଗା ମାନଙ୍କରେ ଜଣେ ଜଣେ ଅଧିକ ପୋଲିସ୍ ମହଜୁଦ୍ ରହିଥାନ୍ତି । କେହି ଗାଡିରେ ଉଠିପାରୁନାହିଁ, କେହି ରାସ୍ତା ଭୁଲିଯାଇଛି ବା କୌଣସି ବିଦେଶୀ ଲୋକ

କୌଣସି ଅସୁବିଧାରେ ପଡ଼ିଛି, ମହକୁଦ ପୋଲିସ୍ ତତ୍‌କ୍ଷଣାତ୍ ଯାଇ ସେମାନଙ୍କୁ ଯଥୋଚିତ ସାହାଯ୍ୟ କରନ୍ତି । ଆବଶ୍ୟକ ହେଲେ ବାଟ ଭୁଲି ଯାଇଥିବା ଲୋକମାନଙ୍କୁ ସେମାନେ ସେମାନଙ୍କର ଘରେ ଯାଇ ପହଞ୍ଚାଇଦେଇ ଆସନ୍ତି ।

ଲୋକମାନେ ଯେତିକି ଭଦ୍ର ହେବେ, ସେମାନେ ଯେତିକି ଯତ୍ନଶୀଳ ହୋଇ ଆପଣାର କର୍ତ୍ତବ୍ୟମାନ ପାଳନ କରିବେ, ଦେଶର ପୋଲିସ୍ ମଧ୍ୟ ସେତିକି ଦକ୍ଷ ଓ ନ୍ୟାୟପୂର୍ଣ୍ଣ ଭାବରେ ଆପଣାର କାର୍ଯ୍ୟ ସମ୍ପନ୍ନ କରିପାରିବେ । ଆମେ ସମସ୍ତେ ଯଦି କେବଳ ଆପଣା ଆପଣାର ସୁବିଧା ଖୋଜିବା, ଯଦି ଜାଣିଶୁଣି ବା ବେଖାତିର କରି ଆମେ ନିୟମ ସବୁ ଭାଙ୍ଗିବା, ଅନ୍ୟମାନଙ୍କର ଅଧିକାରରେ ବାଧା ଦେବା, ତେବେ ପୋଲିସ୍ ଆମର କୌଣସି ସେବା କରିବାକୁ ସମର୍ଥ ହୋଇପାରିବ ନାହିଁ । ଆମେ ସମସ୍ତେ ଯଦି ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବା, ତେବେ ଆମପାଇଁ ନିଯୁକ୍ତ ହୋଇଥିବା ଆମ ଦେଶର ପୋଲିସ୍ ମଧ୍ୟ ଆମର ପ୍ରତିନଧି ହିସାବରେ ତାହାର ଉଚିତ କର୍ତ୍ତବ୍ୟ କରିପାରିବ ।

ଇଉରୋପର ଅନେକ ସହରର ଏତେ ଗାଡ଼ିମଟର ଯିବାଆସିବା କରେ ତଥାପି ସେଠାରେ କେତେବେଳେ ହେଲେ ଏତେଟିକିଏ ଶବ୍ଦ ହୁଏନାହିଁ । ଶହଶହ ସାଇକେଲ ଯାଉଥାଏ, ଆସୁଥାଏ । ତଥାପି କାହାର କୌଣସି ଘଣ୍ଟି ବଜାଇବା ଦରକାର ହୁଏନାହିଁ । ରବିବାର ଦିନ ରାସ୍ତାରେ କୌଣସି ପୋଲିସ୍ ଜଗିବାକୁ ବା ଯାନବାହାନକୁ ନିର୍ଦ୍ଦେଶ ଦେବାକୁ ଆସନ୍ତି ନାହିଁ, ତଥାପି ସେଦିନ ମଧ୍ୟ ଗାଡ଼ିମଟର ଓ ଲୋକମାନେ ରାସ୍ତାଉପରେ

ନିର୍ବିଘ୍ନରେ ଯାତାୟାତ କରନ୍ତି । ଆମ ଦେଶପରି ଯଦି ସେଠାରେ ରାସ୍ତାମଝିରେ ଠିଆହୋଇ ଲୋକମାନେ କଥାବାର୍ତ୍ତା କରୁଥାନ୍ତେ, ଯଦି କେହି କାହାରି ଅସୁବିଧା ପ୍ରତି ଲକ୍ଷ୍ୟ ରଖୁନଥାନ୍ତେ, ତେବେ ପ୍ରତିଦିନ ଯେ କେତେ ଦୁର୍ଘଟଣା ଘଟୁଥାଆନ୍ତା, ତାହା ଆମେ ସହଜରେ ଅନୁମାନ କରିପାରିବା ।

ସମସ୍ତେ ସହଯୋଗ କଲେ ଯେ ସବୁଠାରୁ ଅଧିକ ସହଜରେ ଶାନ୍ତିରକ୍ଷା ହୁଏ । ବିଦେଶର ଅନେକ ସହରକୁ ଗଲେ ଆମେ ତାହାର ପ୍ରମାଣ ପାଇପାରିବା । ଆମେ ସମସ୍ତେ ଆପଣାର କର୍ତ୍ତବ୍ୟ ବୁଝିଲେ ଓ ପାଳନ କଲେ ପୋଲିସ୍‌ର କାର୍ଯ୍ୟ ଅଧିକ ସହଜ ହୋଇଯିବ ଓ ଆମେ ପୋଲିସ୍‌କୁ ଆଉ ଭୟ ନକରି ଆପଣାର ବନ୍ଧୁପରି ମନେକରିବା ।

